ISSN: 2456-9194, Vol. II, Issue. III, Dec. 2018

ପ୍ରତ୍ୟୟ
(Journal of Odia Language, Culture and Science)
JournalHomepage:http://cphfs.in/research.php

# ଜୁଆଙ୍ଗ ଜନଜାତି – ଏକ ପରିଚିତି

**ନରେନ୍ଦ୍ର କୁମାର ପାତ୍ର**
ଗବେଷକ, ସ୍ନାତକୋତ୍ତର ଓଡିଆ ଭାଷା-ସାହିତ୍ୟ ବିଭାଗ,
ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର, ଭୁବନେଶ୍ୱର – ୭୫୧୦୦୪
E-mail: narendrapatra2011@gmail.com

***ସଂକ୍ଷିପ୍ତସାର:*** *କେନ୍ଦ୍ରୀୟ ମୁଣ୍ଡାର ଦୁଇଟି ଶାଖା ଖଡିଆ ଓ ଜୁଆଙ୍ଗ ।ଜୁଆଙ୍ଗମାନଙ୍କର ସ୍ୱତନ୍ତ୍ର ଭାଷାରେ ଅନୁନାସିକ ଧ୍ୱନି ପରିପୂର୍ଣ୍ଣ । ଏହି ସଂପ୍ରଦାୟର ବୟସ୍କ ହେଲେ ପୁଅମାନେ "ମଜାଙ୍ଗ"ରେ ଓ ଝିଅମାନେ "ଧାଙ୍ଗିଡି ବସା"ରେ ଶୁଅନ୍ତି । ଜୁଆଙ୍ଗମାନଙ୍କର ମୁଖ୍ୟ ଦେବତା ହେଲେ ଧରମ ଦେଓତା ବା ସୂର୍ଯ୍ୟଦେବ ଓ ବସୁମାତା ବା ପୃଥିବୀ ଦେବୀ । ଜୁଆଙ୍ଗ ସମାଜରେ ବିଧବା ବିବାହକୁ ସ୍ୱୀକୃତି  ମିଳିଥାଏ । ଜୁଆଙ୍ଗମାନେ ସର୍ବଦା ସେମାନଙ୍କର ସଂସ୍କୃତି, ପରଂପରାକୁ ରକ୍ଷା କରିବା ପାଇଁ ସତତ ଚେଷ୍ଟିତ ହୋଇଥାଆନ୍ତି ।*

***ମୌଳିକ ଶବ୍ଦ:*** *ଜୁଆଙ୍ଗ, ଜନଜାତି ବା ଆଦିବାସୀ, କେନ୍ଦ୍ରୀୟ ମୁଣ୍ଡା, ଜଙ୍ଗଲ, ପତୁଆ*

ଆଦିବାସୀ ବହୁଳ ରାଜ୍ୟ ଭାବରେ ଓଡିଶା ଭାରତରେ ସ୍ୱତନ୍ତ୍ର । ଏହା ସାମଗ୍ରିକ ଜନସଂଖ୍ୟାର ୨୨.୨୧ ଭାଗ । ଓଡିଶାରେ ୬୨ ପ୍ରକାର ଜନଜାତି ବା ଆଦିବାସୀ ଅଛନ୍ତି । ଏହି ଆଦିବାସୀ ସମାଜକୁ ତିନି ପ୍ରମୁଖ ଜନଜାତି ପରିବାରର ଅନ୍ତର୍ଭୁକ୍ତ କରାଯାଏ; ଯଥା: ଅଷ୍ଟ୍ରିକ୍(ମୁଣ୍ଡା), ଦ୍ରାବିଡ ଓ ଭାରତୀୟ ଆର୍ଯ୍ୟ । ପ୍ରତ୍ୟେକ ଜନଜାତି ପରିବାରର ଭାଷା ସ୍ୱତନ୍ତ୍ର ଏବଂ ପ୍ରତ୍ୟେକ ପରିବାର ଅନ୍ତର୍ଗତ ଗୋଷ୍ଠୀଗୁଡିକର ଭାଷା ଭିନ୍ନ ଭିନ୍ନ । ବର୍ତ୍ତମାନ ପ୍ରାୟ ୩୦ରୁ ଅଧିକ ଗୋଷ୍ଠୀ ନିଜର ମାତୃଭାଷା ବ୍ୟବହାର କରନ୍ତି ଏବଂ ଅବଶିଷ୍ଟ ଗୋଷ୍ଠୀ ସ୍ଥାନୀୟ ଓଡିଆ ଭାଷାଗୁଡିକୁ ନିଜର ପ୍ରଥମ ଭାଷା ଭାବେ ଗ୍ରହଣ କରିଛନ୍ତି । ତେବେ ଓଡିଶାର ଆଦିବାସୀଙ୍କ ଭିତରେ ନିମ୍ନଲିଖିତ ଭାଷା ଓ ଉପଭାଷା ପ୍ରଚଳିତ । ଯଥା:

ଅଷ୍ଟ୍ରିକ୍(ମୁଣ୍ଡା): ଭୁମିଜ, ବିରହୋର, ବଣ୍ଡା, ଡିଡାୟୀ, ଗଦବା, ସଉରା, ପାରେଙ୍ଗା, ଖରିଆ, ଜୁଆଙ୍ଗ,ସାନ୍ତାଳୀ, ହୋ, ମୁଣ୍ଡାରୀ, ମାହାଲି ଇତ୍ୟାଦି ।

ଦ୍ରାବିଡ: ଗୋଣ୍ଡୀ, କଣ୍ଡା, କୁଇ, କୁଭି-କନ୍ଧ, କିସାନ, କୋୟା, କୋଲାମୀ, ନାଇକୀ ଓ ଲାରୀ, ପାର୍ଜୀ, ପେଙ୍ଗ, କୁଡୁଖ୍(ଓରାଓଁ) ଇତ୍ୟାଦି ।

ଭାରତୀୟଆର୍ଯ୍ୟ: ବାଥୁଡି, ଭୂୟାଁ, କୁରୁମାଳୀ, ସାଉଁତି, ସାଦ୍ରୀ, କନ୍ଧାନ, ଅଘ୍ରିଆ, ଦେଶିଆ, ଝରିଆ, ହାଲବି, ଉଡ୍ରୀ, ମାଟିଆ, ଭୁଞ୍ଜିଆ ଇତ୍ୟାଦି ।

ଏହି ୬୨ ପ୍ରକାର ଜନଜାତି ମଧ୍ୟରୁ "ଜୁଆଙ୍ଗ"କୁ ଏକ ବିରଳ ଜନଜାତି ଭାବରେ ଗଣାଯାଏ । "ଜୁଆଙ୍ଗ"ର ଅର୍ଥ "ମଣିଷ" । ସେମାନଙ୍କର ବିଶ୍ୱାସ ଯେ,ପୃଥିବୀର ପ୍ରଥମ ମଣିଷ ସେମାନେ । ପୃଥିବୀର ଆଦି ମାନବ ସଭ୍ୟତା ରୂପେ କଥିତ,ବୈତରଣୀ ସଭ୍ୟତାର କେନ୍ଦ୍ରସ୍ଥଳ କେନ୍ଦୁଝରର ଗୋନାସିକା ଗିରିଗର୍ଭ ସେମାନଙ୍କର ବାସସ୍ଥାନ ।ସେମାନେ ଆଦିମ ଅଧିବାସୀ,ଆଦିମାନବ ଏପୃଥିବୀର । ଏହା ମୁଣ୍ଡା ବା ଅଷ୍ଟ୍ରିକ୍ ଭାଷା ପରିବାରର ଅନ୍ତର୍ଭୁକ୍ତ । ଅନ୍ୟାନ୍ୟ ଭାଷା ମଧ୍ୟରେ ଏହାର ସ୍ଥାନ ନିମ୍ନଲିଖିତ ନକ୍ସାରେ ଦ୍ରଷ୍ଟବ୍ୟ ।




ଉପରୋକ୍ତ ନକ୍ସାନୁସାରେ କେନ୍ଦ୍ରୀୟ ମୁଣ୍ଡାର ଦୁଇଟି ଶାଖା ଖଡିଆ ଓ ଜୁଆଙ୍ଗ । ତେଣୁ ଜୁଆଙ୍ଗ ଭାଷାରେ ଅନେକ ସାମ୍ୟ ପରିଲକ୍ଷିତ ହୁଏ । ଜୁଆଙ୍ଗ ଭାଷାର ନିଜସ୍ୱ ଲିପି କିମ୍ବା ଲିଖିତ ସାହିତ୍ୟ ନଥିଲେ ମଧ ଏହା ଏକ ଭାବ ପ୍ରକାଶକ୍ଷମ ଭାଷା ।

ଜୁଆଙ୍ଗମାନଙ୍କର ସ୍ୱତନ୍ତ୍ର ଭାଷା ଅଛି । ତାହା ଅନୁନାସିକ ଧ୍ୱନି ପରିପୂର୍ଣ୍ଣ । ଜୁଆଙ୍ଗ ବର୍ଣ୍ଣମାଳାରେ ମୋଟ ୨୬ ଗୋଟି ବର୍ଣ୍ଣ,୫ ଗୋଟି ସ୍ୱର ବର୍ଣ୍ଣ ଓ ୨୧ ଗୋଟି ବ୍ୟଞ୍ଜନ ବର୍ଣ୍ଣ ଅଛି । ସେମାନଙ୍କର କଥିତ ଭାଷା ହେଲା-"ଜୁଆଙ୍ଗ" । ଯାହାକି ନାକରୁ ଉଚ୍ଚାରଣ ହେଲା ପରି ଜଣାପଡେ ।

ବର୍ତ୍ତମାନ ଓଡିଶାରେ ଜୁଆଙ୍ଗମାନଙ୍କ ସଂଖ୍ୟା ୪୨,୦୦୦ ପାଖା ପାଖି ହେବ । କେବଳ କେନ୍ଦୁଝରରେ ସେମାନଙ୍କ ସଂଖ୍ୟା ଅଧିକ । କେନ୍ଦୁଝରର ଚାରୋଟି ବ୍ଲକ୍ ଯଥା ବାଂଶପାଳ, ତେଲକୋଇ, ହରିଚନ୍ଦନପୁର ଓ ଘଟଗାଁରେ ବହୁ ଆଦିମ ଜୁଆଙ୍ଗ ରହିଥିବାର ଦେଖିବାକୁ ମିଳିଥାଏ କେନ୍ଦୁଝର ବ୍ୟତୀତ ଜୁଆଙ୍ଗମାନେ ଢେଙ୍କାନାଳ, ଅନୁଗୁଳ ପ୍ରଭୃତି ଜିଲ୍ଲାମାନଙ୍କରେ ରହିଥିବାର ଦେଖାଯାଆନ୍ତି । ଏହି ବିରଳ ଜନଜାତିଙ୍କ ବିଷୟରେ ମଧ୍ୟ ଡଃ ସତ୍ୟନାରାୟଣ ରାଜଗୁରୁ ତାଙ୍କ "ଓଡିଶାର ଇତିହାସ "ପୃଷ୍ଠା ୧୧ରେ ଲେଖିଛନ୍ତି-"କେନ୍ଦୁଝର ସମେତ ବିଭିନ୍ନ ଅଞ୍ଚଳରେ ବର୍ତ୍ତମାନ ଯେଉଁ ଆଦିବାସୀମାନେ ବାସ କରୁଛନ୍ତି, ସେମାନେ ଅତି ଆଦିମ ଯୁଗର ଏକ ବିରାଟ ସଂପ୍ରଦାୟର ବଂଶଧର ହୋଇଥିବା ଅନୁମେୟ ।" ବ ବଡେନ୍ ରାମସେଙ୍କ ରଚିତ "Feudatory state Gazetteer" (୧୯୧୦) ରେ ଲେଖିଛନ୍ତି-"ଭାରତର ପୂର୍ବ ଭାଗରେ ଘନ ବନ ପ୍ରଦେଶରେ ବାସ କରୁଥିବା ଆଦିମ ଅଧିବାସୀମାନଙ୍କ ମଧ୍ୟରେ ଜୁଆଙ୍ଗମାନେ ସମ୍ଭବତଃ ପ୍ରାଚୀନତମ ଅଟନ୍ତି ।"

E.W. Dalton, Descriptive Ethnology of Bengal (1872) ପତ୍ରିକାରେ ଏକ ପ୍ରବନ୍ଧ ଲେଖି ସ୍ୱୀକାର କରି ଛନ୍ତି ଯେ, "ଅଭ୍ୟାସ ଓ ଚାଲିଚଳନରେ ଜୁଆଙ୍ଗ ଜାତି ଅତି ଆଦିମ ଓ ତାହା ତାଙ୍କୁ ପ୍ରସ୍ତର ଯୁଗର ସ୍ମରଣ କରାଇ ଦିଏ ।" ଜୁଆଙ୍ଗ ଭାଷାରେ ଶବ୍ଦର ଅର୍ଥ ମଣିଷ ବୋଲି ଡକ୍ଟର ଭେରିୟର ଏଲୱିନ୍ ନିଜର Man in India (୧୯୪୮) ପତ୍ରିକାରେ ଉଲ୍ଲେଖ କରିଛନ୍ତି । ହଣ୍ଟର ସାହେବ ନିଜର Statistical Account of Feudatory States (1877)ରେ ପ୍ରକାଶ କରିଛନ୍ତି ଯେ ଜୁଆଙ୍ଗମାନେ ପୃଥିବୀରେ ଆବିର୍ଭୂତ ହୋଇଥିବା ପ୍ରଥମ ମାନବ ଜାତିର ପ୍ରତ୍ୟକ୍ଷ ବଂଶଧର ବୋଲି ନିଜକୁ ଘୋଷଣା କରନ୍ତି ।

ଜୁଆଙ୍ଗମାନଙ୍କୁ ସାଧାରଣତଃ ଦୁଇ ଭାଗରେ ବିଭକ୍ତ କରାଯାଏ ଯଥା ଭାଗୁଡିଆ ଓ ଥାନିଆ । ଯେଉଁ ଜୁଆଙ୍ଗମାନେ ଖାଦ୍ୟାଭାବ,ବଂଶ ବୃଦ୍ଧି ତଥା ଅନ୍ୟାନ୍ୟ କାରଣରୁ କେନ୍ଦୁଝର ଅଞ୍ଚଳ ଛାଡି ଅନ୍ୟ ଜିଲ୍ଲାକୁ ପଳାୟନ କଲେ,ସେମାନଙ୍କୁ "ଭାଗୁଡିଆ" ବୋଲି କୁହାଗଲା। ଯେଉଁମାନେ ନିଜ ପରଂପରା, ସଂସ୍କୃତିକୁ ଜାବୁଡି ଧରି ପଡିରହିଲେ,ସେମାନଙ୍କୁ "ଥାନିଆ" କୁହାଗଲା ।

ପ୍ରଥମ ଥାନିଆ ମୁଖିଆର ଦୁଇ ପୁଅ ଥିଲେ । ବଡପୁଅ ସର୍ଦ୍ଦାର ହୋଇ ସମସ୍ତ ଶାସନ ଭାର ଗ୍ରହଣ କଲା ଏବଂ ତାର ବଂଶଧରମାନେ କାଳକ୍ରମେ ଭୂୟାଁ ସମ୍ପ୍ରଦାୟରେ ପରିଗଣିତ ହେଲେ । ଏବେ ବି ଭୂୟାଁମାନେ ଅନେକରାଜ କାର୍ଯ୍ୟରେ ଭାଗ ନେଉଛନ୍ତି । ଅନ୍ୟ ପକ୍ଷରେ ସାନ ପୁଅର ବଂଶଧରମାନେ ସେହିପରି ଜୁଆଙ୍ଗ ହୋଇ ରହିଲେ । ସେମାନଙ୍କ ମତରେ ଭୂୟାଁ ଓ ଜୁଆଙ୍ଗ ଦୁଇଭାଇଙ୍କର ବଂଶଧର ବୋଲି କିମ୍ବଦନ୍ତୀରୁ ଜଣାପଡେ । ଅନ୍ୟ ଏକ କିମ୍ବଦନ୍ତୀକୁ ଆଲୋଚନା କଲେ ଜୁଆଙ୍ଗମାନଙ୍କର ପ୍ରଥମ ବାରଟି ବଂଶ ବିଷୟରେ ଜଣାଯାଏ ।

ଥରେ ଜଙ୍ଗଲରେ ରହୁଥିବା ଋଷି, ଋଷିଆଣୀଙ୍କ ବାରଟି ଯାକ ପୁଅ ଶିକାର କରିବାକୁ ଯାଇ କିଛି ନପାଇବାରୁ ଗୋଟାଏ ଗାଈକୁ ମାରି ତାର ମୁଣ୍ଡ ପୋତି ଦେଇ ମାଂସ ଧରି ଘରକୁ ଆସିଲେ । ଋଷି ଓ ତାଙ୍କ ସ୍ତ୍ରୀ ଏହା ଜାଣିପାରିବାରୁ ସେମାନେ ମିଛରେ ଏହାକୁ ସମ୍ବର ମାଂସ ବୋଲି କହି ଠକି ଦେଲେ । ପୁଅମାନଙ୍କର କଥାରେ ଋଷି,ଋଷିଆଣି ଆଦୌ ବିଶ୍ୱାସ କଲେ ନାହିଁ । ତାପରେ ପୁଅମାନେ ଋଷି ଋଷିଆଣୀକୁ ମୁଣ୍ଡ ପୋତା ହୋଇଥିବା ଜାଗାକୁ ନେଇଗଲେ । ସେହି ଜାଗାକୁ ଲକ୍ଷକରି ପିଲାମାନେ ଶପଥକରି କହିଲେ ଯେ-ଯଦି ଏହା ଗାଈର ମୁଣ୍ଡ ହୋଇଥାଏ ଏହିମୁଣ୍ଡରୁ ପାଣି ବାହାରୁ । ପିଲାଙ୍କ କଥା ସରୁସରୁ ସେହି ସ୍ଥାନରୁ ପ୍ରବଳ ବେଗରେ ପାଣି ବୋହିବାକୁ ଲାଗିଲା । ପରେ ପରେ ଦେଖାଗଲା ଯେ, ଗାଈ ନାକପୁଡାରୁ ଦୁଇଟି ପାଣିର ଧାର ବାହାରୁଛି । ଏହି ପାଣିର ଧାର ପ୍ରଖର ସ୍ରୋତରେ ବୋହିବାକୁ ଲାଗିଲା । ସ୍ରୋତର ବେଗ ଏତେ ଥିଲା ଯେ, ଋଷିଙ୍କର ବାରଟି ଯାକ ମିଛୁଆ ପୁଅ ସେ ସୁଅରେ ଭାସି ଗଲେ । ପ୍ରାଣରକ୍ଷା କରିବାକୁ ଯାଇ ଯିଏ ଯେଉଁଆଡେ ଯାହା ପାଇଲେ,ତାହାରି ଆଶ୍ରାରେ ପୁଅମାନେ କୌଣସି ପ୍ରକାରେ ବଞ୍ଚିଗଲେ । ସେହି ଦିନଠାରୁ ଯାହା ଯୋଗୁଁ ଯେଉଁ ପୁଅର ପ୍ରାଣ ରକ୍ଷା ହୋଇଥିଲା, ସେହି ଅନୁସାରେ ନୂଆ ରୂପରେ ବାରଟି ବଂଶର ସୃଷ୍ଟି ହେଲା, ଯଥା:-

୧. ଚଂପେଇ ବକ୍:ଚମ୍ପା ଗଛକୁ ଆଶ୍ରାକରି ବଞ୍ଚିଥିବା ପୁଅ ଏହି ବଂଶର ପ୍ରଥମ ମଣିଷ ।

୨. ଜିଟୁଆ ବକ୍ : ଜିଟୁଆ ଲଟାକୁ ଧରି ରକ୍ଷା ପାଇ ଯାଇଥିବା ପୁଅଟି ଏହି ବଂଶର ମୂଳ ମଣିଷ ।

୩. କିରିୟାରୀ ବକ୍ : କିରି ବା କରଡା ଗଛକୁ ଆଶ୍ରାକରି ବଞ୍ଚିଥିବା ପୁଅ ଏହି ବଂଶର ପ୍ରଥମ ମଣିଷ ।

୪. କଇଁଚ ବକ୍ : କଇଁଚକୁ ଧରି ରକ୍ଷା ପାଇଯାଇଥିବା ପୁଅ ଏହି ବଂଶର ଆଦି ମଣିଷ ।

୫. ଲାଞ୍ଜିଆ ବକ୍ : ଏକ ପ୍ରକାର କଣ୍ଟା ଗଛକୁ ଆଶ୍ରାକରି ବଞ୍ଚିଯାଇଥିବା ପୁଅ ଏହି ବଂଶର ପ୍ରଥମ ମଣିଷ ।

୬. ରୁଣ୍ଡାଲି ବକ୍ : ଗଛ ଉପରେ ଥିବା ମଞ୍ଚାକୁ ଆଶ୍ରାକରି ବଞ୍ଚିଥିବା ପୁଅଟି ଏହି ବଂଶର ପ୍ରଥମ ମଣିଷ ।

୭. ସାଇଁ ବକ୍ : ଏକ ପ୍ରକାର ଘାସକୁ ଧରି ରକ୍ଷା ପାଇଯାଇଥିବା ପୁଅଟି ଏହି ବଂଶର ପ୍ରଥମ ମଣିଷ ।

୮. ସଲାର ବକ୍ : ସଲକି ଗଛକୁ ଧରି ବଞ୍ଚିଯାଇଥିବା ପୁଅଟି ଏହି ବଂଶର ପ୍ରଥମ ମଣିଷ ।

୯. ସରିଂ ବକ୍ : ଏକ ବଡ ମାଛକୁ ଧରି ଉଦ୍ଧାର ପାଇଯାଇଥିବା ପୁଅଟି ଏହି ବଂଶର ପ୍ରଥମ ମଣିଷ ।

୧୦. ସାରିଆରି ବକ୍ : ଶିଆଳୀ ଲଟାକୁ ଆଶ୍ରାକରି ବଞ୍ଚି ଯାଇଥିବା ପୁଅଟି ଏହି ବଂଶର ପ୍ରଥମ ମଣିଷ ।

୧୧. ଶାରୀୟା ବକ୍ : ଶାଳ ଗଛକୁ ଧରି ଉଦ୍ଧାର ପାଇଯାଇଥିବା ପୁଅଟି ଏହିବଂଶର ପ୍ରଥମ ମଣିଷ ।

୧୨. ଟାଙ୍ଗର ପଡିଆ ବକ୍ : ଏକ ଉଚ୍ଚ ଜାଗାକୁ ଚଢିଯାଇ ରକ୍ଷା ପାଇଯାଇଥିବା ପୁଅଟି ଏହି ବଂଶର ପ୍ରଥମ ମଣିଷ ।

ଏହିପରି ଭାବରେ ଜୁଆଙ୍ଗ ସଂପ୍ରଦାୟର ପ୍ରଥମ ୧୨ଟି ବଂଶର ସୃଷ୍ଟି ହୋଇଥିଲା । ହେଲେ ବିଭିନ୍ନ ସମୟରେ ବଂଶ ବିସ୍ତାର,ବଂଶ ବିଭାଜନ ହୋଇ ସେମାନଙ୍କର ଗୁଡାଏ ବଂଶର ସୃଷ୍ଟି ହୋଇଅଛି । ବର୍ତ୍ତମାନ ନୂତନ ବଂଶର

ନାମ ବିଭିନ୍ନ ଗ୍ରାମର ନାମ ଅନୁସାରେ ହୋଇଥିବାବେଳେ ବିଭିନ୍ନ ଜୀବଜନ୍ତୁଙ୍କ ନାମ ଅନୁସାରେ ହୋଇଥିବାର ଦେଖାଯାଏ ।

ଜୁଆଙ୍ଗମାନଙ୍କର ଶାରିରୀକ ଗଠନ ପ୍ରଣାଳୀ ମଧ୍ୟମ ଧରଣର । ମହିଳାମାନେ ପୁରୁଷମାନଙ୍କଠାରୁ ଉଚ୍ଚତାରେ ସାମାନ୍ୟ କମ୍ ହୋଇଥାନ୍ତି । ଜୁଆଙ୍ଗମାନଙ୍କର ଦେହର ରଙ୍ଗ ସାଧାରଣତଃ ପାଉଁଶିଆ ବା ସାମାନ୍ୟ କଳା ହୋଇଥାଏ । ମୁହଁର ଆକୃତି ଅଣ୍ଡାପରି ପାଞ୍ଚକୋଣିଆ ହୋଇଥାଏ । ନାକ ବେଶ୍ ଚଉଡା, ଗାଲର ହନୁହାଡ ସାମାନ୍ୟ ଉଚ୍ଚା । ମୁଣ୍ଡର କେଶ ଟାଆଁସିଆ, କୁଞ୍ଚୁକୁଞ୍ଚିଆ ।

ଆଗକାଳରେ ଜୁଆଙ୍ଗମାନେ ସଂପୂର୍ଣ୍ଣ ଉଲଗ୍ନ ଥାଇ ପତ୍ର ପିନ୍ଧୁଥିଲେ ବୋଲି ପ୍ରସିଦ୍ଧ ଐତିହାସିକ ଜେ.ଏଚ୍.ହଣ୍ଟର ସାହେବ ସେମାନଙ୍କୁ "ପତୁଆ" ବୋଲି ନାମିତ କରିଥିଲେ । ଏବେ କିନ୍ତୁ ଅଧିକାଂଶ ଜୁଆଙ୍ଗ ଲୁଙ୍ଗି, କୌପୁନି ଓ ସ୍ତ୍ରୀଲୋକମାନେ ମୋଟା ଶସ୍ତା ଶାଢୀ ପରିଧାନ କରୁଥିବାର ଦେଖାଯାଏ । ଜୁଆଙ୍ଗୁଣୀମାନେ ଭାରି ଅଳଙ୍କାର ପ୍ରିୟ । ସେମାନେ ନାକରେ ଗୋଜିକାଠି, ନୋଳକ, କାଚମଲ୍ଲ, ବାଙ୍କିଆ, ନାକମାଛି, ବାଜୁ, ବଳା, ବାହୁଟି ଓ ବିଭିନ୍ନ ରଂଗର ପଥର ମାଳି, ପୋହଳା ମାଳ, ରୁଞ୍ଜମାଳା ଆଦି ପିନ୍ଧିବାକୁ ଭଲ ପାଆନ୍ତି । ଆହୁରି ମଧ୍ୟ ସ୍ତ୍ରୀ ଲୋକମାନେ ହାତ, ଗୋଡ, ମୁଣ୍ଡରେ ଚିତା କୁଟେଇବାକୁ ଭଲ ପାଆନ୍ତି । ପୂଜା ପର୍ବ ପର୍ବାଣୀରେ ମୁଣ୍ଡରେ କୁସୁମ ତେଲ ଲଗାଇ ଜୁଆଙ୍ଗୁଣୀମାନେ ବିଭିନ୍ନ ବନଫୁଲରେ ସଜ୍ଜିତ ହୋଇ ନାଚ କରିଥାନ୍ତି ।

ସେମାନଙ୍କୁ ଲକ୍ଷ୍ୟକରି ୰ କବି ରାଧାନାଥ ରାୟ ତାଙ୍କ "ପାର୍ବତୀ" କାବ୍ୟରେ ଠାଏ ଲେଖିଛନ୍ତି-

X X X X

ବିସ୍ମିତ ହେବାରୁ ସେହି ଛବି ଆଦ୍ୟ

ବୈତରଣୀ ପୂତଝରେ,

ଉଲ୍ଲାସେ ଜୁଆଙ୍ଗ ବହ୍ନି ଜାଳିଥିବେ

ଗୋନାସା ଶୈଳ ଶିଖରେ ।

ଜୟ ଗଙ୍ଗେଶ୍ୱର ବୋଲି କ୍ଷଣେ କ୍ଷଣେ

ଉଲ୍ଲାସେ ମାରି କୁହାଟ,

ରାତିଯାକ ବସି ଶିଖରେ ଜୁଆଙ୍ଗ

କରୁଥିବେ ଚାଙ୍ଗୁନାଟ ।।

ମୁଖ୍ୟତଃ ଭାତ ଉପରେ ନିର୍ଭର କରୁଥିବା ଜୁଆଙ୍ଗମାନେ ସବୁ ସମୟରେ ପୋଡୁଚାଷ ଉପରେ ନିର୍ଭର କରି ଆସିଥାନ୍ତି । କିନ୍ତୁ ସମତଳ ଅଞ୍ଚଳରେ ବାସ କରୁଥିବା ଏବଂ ଆଦିମତା ପରିହାର କରିଥିବା ଜୁଆଙ୍ଗ ସଂପ୍ରଦାୟ ସ୍ଥାୟୀ କୃଷିକର୍ମ କରୁଅଛନ୍ତି । ତଥାପି ସେମାନେ ସଂପୂର୍ଣ୍ଣ ଭାବେ ପରଂପରା ଗତ ଜୀବନଧାରାରୁ ବିଚ୍ୟୁତ ହୋଇନାହାନ୍ତି । ଖାଦ୍ୟ, ବାସଗୃହ, ବସ୍ତ୍ର ପାଇଁ ସେମାନେ ମୁଖ୍ୟତଃ ଅରଣ୍ୟ ଉପରେ ନିର୍ଭର କରୁଥିଲେ । ବିଭିନ୍ନ ପ୍ରକାର ଚେର, ଫଳ, ମୂଳ, ପତ୍ର ଓ ମଞ୍ଜି ପ୍ରଭୃତି ଖାଦ୍ୟ ଓ ଔଷଧ ଭାବରେ ବ୍ୟବହାର କରିବା ସଂଗେ ସଂଗେ କେତେକଙ୍କର ପ୍ରକ୍ରିୟା କରଣ ଜରିଆରେ ଅନେକ ଉପାଦାନ ସାଇତି ରଖୁଥିଲେ । ସାଧାରଣତଃ ମାର୍ଚ୍ଚ ମାସରେ ସେମାନେ ଜଙ୍ଗଲରେ ନିଆଁ ଲଗାଇ ଦେଇଥାନ୍ତି, ଜୁନ୍/ଜୁଲାଇରେ ବର୍ଷା ହେଲାପରେ ଜମିକୁ ହଳ, ଲଙ୍ଗଳ ଦ୍ୱାରା ଖୋଳି ବିହନ ବୁଣିଥାନ୍ତି । ଜୁଆଙ୍ଗମାନେ ଧାନ ସହିତ ନିଜ ନିଜର ଜମିରେ ରାଶି, ସୋରିଷ, କାଙ୍ଗୁ, ଗଂଗେଇ, ହରଡ, ଗୁଆଁର ଆଦି ଚାଷ କରିଥାନ୍ତି । ସେମାନଙ୍କର ପଥୁରିଆ ପାହାଡ ଜମିରେ କୌଣସି ଜଳସେଚନର ବ୍ୟବସ୍ଥା ନଥିଲା ବେଳେ ସେମାନେ ବର୍ଷା ଉପରେ ନିର୍ଭରଶୀଳ ହୋଇଥାନ୍ତି । ଚାଷ ଭଲ ନହେଲେ ବା ଖାଦ୍ୟାଭାବ ଦେଖାଗଲେ ଜୁଆଙ୍ଗମାନେ ମାଣ୍ଡିଆଜାଉ, ଗଂଗେଇ ଖିରି, ମକା ପିଠା, କାଙ୍ଗୁ ଇତ୍ୟାଦି ଖାଦ୍ୟ ଭାବରେ ଗ୍ରହଣ କରିଥାନ୍ତି । ବର୍ଷର ଅଧିକାଂଶ ସମୟ ବଣର ଫଳମୂଳ ଯଥା-ପିତାଆଳୁ, ବଇଗଁା ଆଳୁ,ଜରଇ ବା ପାଣିଆଳୁ, କାଳକୁ ବା କଣ୍ଟାଆଳୁ, ମିଠା ଆଳୁ,ଓଲୁଅ ପ୍ରଭୃତି ଆଳୁଖାଇ ଜୀବିକା ନିର୍ବାହ କରନ୍ତି । ଏହା ଛଡା ଋତୁ କାଳିନ ଫଳ, ଆମ୍ବ, ପଣସ, କେନ୍ଦୁ, ଚାରକୋଳି, ବଇଁଚ କୋଳି, ଜାମୁକୋଳି, କୁସୁମ କୋଳି ସେମାନଙ୍କର ଖାଦ୍ୟ ଅଟେ । ବଣର ଶାଗ ଭିତରେ-କୁଇଲାରି ଶାଗ, ପିତାଶାଗ, ଚାକୁଣ୍ଡା ଶାଗ, ଶୁନ୍ସୁନି ଶାଗ, ବୋଇତାଳୁ, କୁରୁଶୁଣି, ସୋରିଷ ଶାଗ ଇତ୍ୟାଦିକୁ ସେମାନେ ପାକ କରି ଖାଇଥାଆନ୍ତି । ଜୁଆଙ୍ଗମାନଙ୍କର ଜୀବନଯାପନ ପ୍ରଣାଳୀ ଅତି ସରଳ ଓ ନିରାଡମ୍ବର । ଘରଗୁଡିକ କ୍ଷୁଦ୍ରକାୟ । ସାଧାରଣତଃ ଏକ କୋଠରୀ ବିଶିଷ୍ଟ । କୋଠରୀ ମଝିରେ ଶୟନ ପାଇଁ ଓ ଅନ୍ୟ ପାଖରେ ରୋଷେଇ ଘର ରୂପେ ବ୍ୟବହୃତ ହୋଇଥାଏ । ଘର ଭିତରେ ଥିବା ଛୋଟ ଭାଡି ଉପରେ ସଞ୍ଚିତ ଖାଦ୍ୟଶସ୍ୟ ଓ ସମସ୍ତ ଗୃହ ଉପକରଣ ରଖାଯାଇଥାଏ । ଘର ଭିତରେ ଥିବା ଛୋଟ ଭାଡି ଉପରେ ସଞ୍ଚିତ ଖାଦ୍ୟଶସ୍ୟ ଓ ସମସ୍ତେ ଗୃହ ଉପକରଣ ରଖାଯାଇଥାଏ । ଘରର ଉଚ୍ଚତା ୧୦ ଫୁଟରୁ ଅଧିକ ଉଚ୍ଚ ହୁଏ ନାହିଁ । ଏହାର ଦ୍ୱାରଗୁଡିକ ଅତି କ୍ଷୁଦ୍ର ଓ ତହିଁରେ ଝରକା ନଥାଏ । ଗୃହର ଚାରିଦିଗରେ ଏକ ଅପ୍ରସସ୍ଥ ବାରଣ୍ଡା ଥାଏ । ସେଇଠି ସମସ୍ତେ ବସାଉଠା କରନ୍ତି । ଛେଳି କୁକୁଡାଙ୍କ ପାଇଁ (ଯାହାର ସୁବିଧା ଥାଏ) ସେ ନିଜ ଘର ନିକଟରେ ଅନ୍ୟ ଏକ ସ୍ୱତନ୍ତ୍ର ଘର ତିଆରି କରିଥାଏ, ନଚେତ୍ ଜୁଆଙ୍ଗମାନଙ୍କର ଶୋଇବା ଘର ଭିତରେ ଛେଳି କୁକୁଡା ବନ୍ଧା ହୋଇ ରହନ୍ତି ।

ଜୁଆଙ୍ଗ ପରିବାର ବୋଇଲେ ସ୍ୱାମୀ/ସ୍ତ୍ରୀ ଓ ଶିଶୁପୁତ୍ର କନ୍ୟାଙ୍କୁ ବୁଝାଏ । ବୟସ୍କ ହେଲେ ପୁଅମାନେ "ମଜାଙ୍ଗ"ରେ ଓ ଝିଅମାନେ "ଧାଙ୍ଗିଡି ବସା"ରେ ଶୁଅନ୍ତି । ଜୁଆଙ୍ଗ ପରିବାରରେ କିଛି ପରିମାଣରେ ଖାଦ୍ୟଶସ୍ୟ,କୃଷି ଉପକରଣ ଓ ଶିକାର ପାଇଁ କିଛି ଅସ୍ତ୍ରଶସ୍ତ୍ର ବ୍ୟତୀତ ମୂଲ୍ୟବାନ ପଦାର୍ଥ କିଛି ନଥାଏ । ଗୃହୋପକରଣ ବୋଇଲେ ଦୁଇତିନିଖଣ୍ଡ ଖଜୁରୀପଟିଆ, ଗୋଟିଏ ଦୁଇଟି କାଠ ତଳିଆ, ସାରକା ଅଥବା ପାଲ ଛାଞ୍ଚୁଣୀ ୨/୪ଟା, ଘର ଓରାରେ ଟଙ୍ଗା ହୋଇଥିବା ଶିଆଡି ଦଉଡିରେ ନିମିତ ଶିକାରେ ୨/୩ଟି ମାଟି ହାଣ୍ଡି, ପାଣି ପିଇବା ପାଇଁ ୪/୫ ଗୋଟା ସୁକୁଡା ବା ଲାଉତୁମ୍ବା, ଧାନକୁଟିବା ପାଇଁ ୧/୨ଟା ପାଉଡୁଣୀ, କଟାବଟା ପାଇଁ ପନିକି ଓ ଶିଳଶିଳପୁଆ, ରାନ୍ଧିବା ପାଇଁ ୨/୪ଟା ମାଟିହାଣ୍ଡି, ପାଣି ରଖିବା ପାଇଁ ୨/୩ଟା ମାଠିଆ, କିଛି ଲୁଗାପଟା, ଖଲି, ଚଉପତି ଓ ଗୋଟିଏ ବାଉଁଶ ପେଡିରେ ଅଳଙ୍କାର ତଥା କେଶ ପ୍ରସାଧନ ସାମଗ୍ରୀ ଓ ପଇସା ଗାଞ୍ଜିଆ ରହିଥାଏ ।

କୃଷି ଉପକରଣ ମଧ୍ୟରେ ୨/୩ ଟି କୋଦାଳ,୪/୫ଟି କୁରାଢ଼ି, ଟାଙ୍ଗିଆ ବା ବୁଡିଆ,୨/୪ ଟି ଗଇଁତି, ଦା, ବାହୁଙ୍ଗି, ଶିକା, ଦଉଡି ଓ ଗୋଟିଏ ଲଙ୍ଗଳ, ଜୁଆଳି ରଖାଯାଇଥାଏ । କୟଶିକାର ପାଇଁ ଧନୁ, ତୀର, ଛିଟିକଣି ଓ ମାଛ ମାରିବା ପାଇଁ କେତେକଙ୍କ ଘରେ ଜାଲ ଓ ବନଶି ରହିଥାଏ । ଜୁଆଙ୍ଗ ପରିବାରରେ ପୁରୁଷ ଅପେକ୍ଷା ସ୍ତ୍ରୀମାନେ ଅଧିକ ପରିଶ୍ରମୀ । ପୁରୁଷ କେବଳ ଶିକାର ଓ ଘର ଛାଉଣୀ ବ୍ୟତୀତ ଅନ୍ୟ ସମୟରେ ମଦ ପିଇବା, ନାଚ

କରିବା ବ୍ୟତୀତ ଅନ୍ୟ କିଛି କରେ ନାହିଁ । ଗୋଟିଏ ଗ୍ରାମରେ ବସ କରୁଥିବା ସମସ୍ତ ଜୁଆଙ୍ଗମାନେ ଏକ ବଂଶୋଦ୍ଭବ ହୋଇଥାନ୍ତି । ତେଣୁ ଗୋଟିଏ ଗ୍ରାମ ମଧ୍ୟରେ ବିବାହ ସଂପୂର୍ଣ୍ଣ ନିଷେଧ । ଜୁଆଙ୍ଗ ପିଲା ବଡ ହେଲେ ସେ ଯାହାକୁ ପସନ୍ଦକରେ ତାକୁ ସେ କୌଣସି ଉତ୍ସବ ବା ମେଳାରୁ ଜୋର କରି ଝିଙ୍କି ଆଣି ଚୋରିକରି ଆଣି ବିବାହ କରିଥାଏ, ଅଥବା ପୁଅ/ଝିଅ ପରସ୍ପରଙ୍କୁ ଭଲ ପାଇ ପ୍ରେମ କରି ବିବାହ କରିବାର ପ୍ରଥା ଜୁଆଙ୍ଗ ସମାଜରେ ପ୍ରଚଳିତ ।

ଜୁଆଙ୍ଗମାନଙ୍କର ଧର୍ମ ବ୍ୟବସ୍ଥା ମଧ୍ୟ ଖୁବ୍ ସରଳ । ସେମାନଙ୍କ ମୁଖ୍ୟ ଦେବତା ହେଲେ ଧରମ ଦେଓତା ବା ସୂର୍ଯ୍ୟଦେବ ଓ ବସୁମାତା ବା ପୃଥିବୀ ଦେବୀ । ସେମାନେ ଏହି ଦୁଇ ଦେବତାର ପୂଜା ଆରଧନା କରନ୍ତି । ମୂର୍ତ୍ତିପୂଜା ପ୍ରାୟ କରନ୍ତି ନାହିଁ । ପ୍ରତି ଗ୍ରାମରେ ଜଣେ ଜଣେ ଗାଁଶିରୀ ଠାକୁରାଣୀ ରହିଥାନ୍ତି । ଏକ ଲମ୍ବା ଓ ମୁନିଆ ପଥରକୁ ଗ୍ରାମଦେବତୀ ରୂପେ କଳ୍ପନା କରାଯାଇ ତାହାଙ୍କୁ ମଜାଙ୍ଗ ପାଖରେ ଏକ ଗଛ ମୂଳରେ ସ୍ଥାପନା କରାଯାଇ ପୂଜା କରାଯାଇଥାଏ । ସେମାନଙ୍କର ପୁରୋହିତଙ୍କୁ ଦେହୁରୀ କୁହାଯାଏ, ସ୍ଥାନେ ସ୍ଥାନେ "ନାଗମ" ମଧ୍ୟ କହନ୍ତି । ମାଘ ପୋଡି ବା ମାଘ ପୁନିଅ ଜୁଆଙ୍ଗମାନଙ୍କର ପ୍ରଧାନ ପର୍ବ । ସେଦିନ ଦେହୁରୀ (ନାଗମ) ଓ ପ୍ରଧାନ ଗାଁଲୋକଙ୍କୁ ଏକାଠି କରି ବଣସଫା କରିବାକୁ ଯାଆନ୍ତି । ଗୋଟାଏ ନିର୍ଦ୍ଦିଷ୍ଟ ଗଛ ପାଖରେ ସମସ୍ତେ ପହଞ୍ଚନ୍ତି । ସେ ଗଛକୁ ପୂଜା କରାଯାଏ, ତାପରେ ସେ ଗଛକୁ ମିଶି ସମସ୍ତେ ହାଣନ୍ତି । ଗଛଟି ଯେଉଁ ଦିଗକୁ ପଡେ, ସେ ଦିଗରେ ଭଲ ଫସଲ ଫଳିବ ବୋଲି ସେମାନଙ୍କର ବିଶ୍ୱାସ ।

ଆମ୍ବ ନୂଆଖିଆ, ଧାନ ନୂଆଖିଆ ଜୁଅଙ୍ଗମନଙ୍କର ଆଉ ଦୁଇଟି ପ୍ରଧାନ ପର୍ବ । ଚୈତ୍ର ମାସରେ ଗଛରେ ନୂଆକରି ଆମ୍ବ କଷି ଧରିଲେ ସେମାନେ ଆମ୍ବ ନୂଆଖିଆ ପର୍ବ ପାଳନ କରନ୍ତି । ସେହିପରି ମାର୍ଗଶୀର ମାସରେ ନୂଆଧାନ କଟା ହେଲେ ନୂଆଖିଆ ପର୍ବ ପାଳନ କରାଯାଏ । ଏହି ସବୁ ପର୍ବପର୍ବାଣିରେ ଘରଦ୍ୱାର ଲିପାପୋଛା ହୁଏ, ଠାକୁରଙ୍କୁ ଭୋଗ ଲଗାଯାଏ । ଗୋଟାଏ ଗୋଟାଏ ପର୍ବରେ ଠାକୁରଙ୍କୁ ଭୋଗ ସହିତ ମଦ ମଧ୍ୟ ଅର୍ପଣ କରାଯାଉଥିବାର ଦେଖାଯାଏ । ପୂଜା, ପର୍ବ, ପର୍ବାଣୀ ବା ନୂଆଖିଆ ସମୟରେ ହାଣ୍ଡିଶାଳରୁ ପୁରୁଣା ହାଣ୍ଡି ବାହାର କରାଯାଇ ନୂଆ ହାଣ୍ଡିରେ ନୂଆ ଅନ୍ନ ରନ୍ଧାଯାଏ ।

ଜୁଆଙ୍ଗମାନେ ଧର୍ମଦେବତା, ଧରତୀମାତା ତଥା ଗାଁଶିରୀ ଠାକୁରାଣୀଙ୍କୁ ପୂଜା କରୁଥିବାବେଳେ ରଷି, ରଷିଆଣୀ, ବାସୁକୀମାତା, ଥାନପତି, ମହାପତି, ବୋଡାମ୍ ଠାକୁରଙ୍କୁ ମଧ୍ୟ ପୂଜା କରନ୍ତି । ରେଙ୍ଗା ପାଟ୍, କୋଡ ପାଟ୍, ମାଲ୍ୟଗିରି, ଚନ୍ଦ୍ରଗିରି ଆଦି ପାହାଡମାନଙ୍କୁ ପୂଜା କରୁଥିବାବେଳେ ବୈତରଣୀଙ୍କୁ ମଧ୍ୟ 'ବୋଇତିନି ପାଟ୍' ବୋଲି ପୂଜା କରିଥାନ୍ତି ।

ଜୁଆଙ୍ଗ ସମାଜରେ ବାଲ୍ୟବିବାହ ଆଦୌ ନ ଥିବାବେଳେ, ସମୟେ ସମୟରେ ଏହା ଦେଖାଯାଇଥାଏ । ଯାହାର ଆଦୌ ପୁଅ ନଥାଏ, କେବଳ ଝିଅଟିଏ ଥାଏ, ସେ ପିଲାଟି ବେଳୁ ଗୋଟାଏ ପୁଅକୁ ଆଣି ଘରେ ରଖି ଆଦର ଯତ୍ନ କରି ବଢାଏ, ପୁଅ, ଝିଅ ବଡହେଲେ, ସେମାନଙ୍କର ବିବାହ କରାଯାଇ, ପୁଅକୁ ଘରଜ୍ୱାଇଁ ଭାବରେ ରଖାଯାଏ ।

ଜୁଆଙ୍ଗ ସମାଜରେ ବିଧବା ବିବାହକୁ ସ୍ୱୀକୃତି ମିଳିଥାଏ । ଯେକୌଣସି ଘରେ ପୁଅଟିଏ ମରିଗଲେ, ତାର ବିଧବାସ୍ତ୍ରୀକୁ ତାର ସାନ ଦିଅର ଚାହିଁଲେ ବିବାହ କରିପାରେ । ସେଥିପାଇଁ ତାଙ୍କୁ କନ୍ୟା ଘରକୁ କୌଣସି ପଣ ଦେବାକୁ ପଡେ ନାହିଁ, କେବଳ ସାହିଭାଇକୁ ଭୋଜି ଭାତରେ ଆପ୍ୟାୟିତ କରିବାକୁ ହୋଇଥାଏ । ଜୁଆଙ୍ଗ ସମାଜରେ ଏକ ପତ୍ନୀ ବିବାହ ପ୍ରଥା ବିଦ୍ୟମାନ, ତଥାପି କୌଣସି ସ୍ତ୍ରୀ ଲୋକର ପିଲାପିଲି ନ ହେଲେ, ତାର ସ୍ୱାମୀ ଦ୍ୱିତୀୟ ପତ୍ନୀ ଗ୍ରହଣ କରିଥାଏ ।

ଜୁଆଙ୍ଗ ସମାଜରେ କେହି ମରିଗଲେ, ତାର ଶବକୁ ପୋଡି ଦେବାର ବ୍ୟବସ୍ଥା ଅଛି । କିନ୍ତୁ ସାପ କାମୁଡାରେ ଅଥବା ବାଘ ମାରିଥିବା ହେତୁ କେହି ମୃତ୍ୟୁବରଣ କଲେ, ତାର ଶବକୁ ନଈରେ ଭସାଇ ଦିଆଯାଏ, ଅଥବା ଗଭୀର ଖାତ ଖୋଳି ଶବକୁ ପୋତି ଦିଆଯାଏ । ଶବ ପୋଡିବାର ବା ପୋତିବାର ଗୋଟିଏ ଦିନ ପରେ ବନ୍ଧୁ ଲୋକମାନେ ମୃତ ପରିବାରର ଘରକୁ ସଫାସୁତୁରା କରନ୍ତି । ତୁଳସୀ ପାଣିରେ ଘର ସବୁ ସିଞ୍ଚାଯାଏ । ତତ୍ ପରେ ମୃତ ପରିବାରର ଘର ସହ ପାଖରେ ଥିବା ନିଜ ବଂଶ ବା କୁଟୁମ୍ବର ଘରସବୁ ଲିପାପୋଛା ହୁଏ । ନୂଆ ହାଣ୍ଡିରେ ବନ୍ଧୁବାନ୍ଧବ ରୋଷେଇ ବାସ କରି ସମସ୍ତଙ୍କୁ ଖାଇବାକୁ ଦେଇ ଶୁଦ୍ଧି କରନ୍ତି । ଯଦି ମୃତ ଲୋକର କୌଣସି ବ୍ୟବହାର୍ଯ୍ୟ ଜିନିଷ ରହିଯାଇଥାଏ, ତାପର ଦିନ ସମସ୍ତେ ପୁଣି ଥରେ ଶବ ପୋଡାହୋଇଥିବା ସ୍ଥାନକୁ ଯାଇ ସେସବୁ ଜିନିଷକୁ ପୋଡାପୋଡି କରି ଗାଧୋଇ ପାଧୋଇ ଫେରନ୍ତି । ସମସ୍ତେ ମିଳିମିଶି ରୋଷେଇ ବାସ କରି ଖାଆନ୍ତି ।

ଜୁଆଙ୍ଗମାନେ ଯେତେ ଗରୀବ ଓ ଅବହେଳିତ ହେଲେ ମଧ୍ୟ ସେମାନଙ୍କର ସଂସ୍କୃତି, ପରଂପରାକୁ ରକ୍ଷା କରିବା ପାଇଁ ସତତ ଚେଷ୍ଟିତ ହୋଇଥାଆନ୍ତି । ଯେତେ ଯାହା ହେଲେ ମଧ୍ୟ ସେମାନଙ୍କର ବିବାହ, ପର୍ବପର୍ବାଣି, ନାଚଗୀତ, ଶୁଦ୍ଧିକ୍ରିୟା ଇତ୍ୟାଦି ସେମାନେ ଯଥାରୀତି ପାଳନ କରିଥାନ୍ତି । ଜୁଆଙ୍ଗମାନଙ୍କର ନିମ୍ନ ଅର୍ଥନୈତିକ ମାନଦଣ୍ଡ ସେମାନଙ୍କର ସଂସ୍କୃତି, ପରଂପରା ଉପରେ କୌଣସି ପ୍ରଭାବ ପକାଇପାରି ନାହିଁ ।

**ସହାୟକ ଗ୍ରନ୍ଥସୂଚୀ:**

୧. ଦାସ ବିପିନ୍ ବିହାରୀ, ଶ୍ରୀ ଭଞ୍ଜଭୂମି କେନ୍ଦୁଝରୀ

୨. ବାରିକ୍ ନିରଞ୍ଜନ, କେନ୍ଦୁଝର ଇତିହାସ

୩. ଚକ୍ରବର୍ତ୍ତୀ ରମେଶ ଚନ୍ଦ୍ର, ସମୟର ଆଇନାରେ କେନ୍ଦୁଝର

୪. ରାଉତ ପ୍ରଦୀପ କୁମାର, କେନ୍ଦୁଝରର ବିରଳ ଜନଜାତି ଜୁଆଙ୍ଗ

୫. ପ୍ରଧାନ ରଞ୍ଜନ, ଜୁଆଙ୍ଗ ପର୍ବପର୍ବାଣୀ

୬. ପ୍ରଧାନ ରଞ୍ଜନ, ଐତିହ୍,ସଂସ୍କୃତି ଓ ପର୍ଯ୍ୟଟନ କେନ୍ଦୁଝର

୭. ପ୍ରଧାନ ରଞ୍ଜନ, ଗୋନାସିକା ନନ୍ଦିନୀ ବୈତରଣୀ

୮. ପାଢୀ, ଜଗବନ୍ଧୁ, ଜୁଆଙ୍ଗ ଜୀବନ ସଂଗୀତ,ମନୋରମା ପବ୍ଲିଶର୍ସ, କଟକ

9. Edited by Dr. N.Patnaik-The Juang

10. N.Patnaik, B.P.Chaudhary, K.Seeland, A.Rath, A.K.Biswal, D.B.Giri, Forest Tribes of Orissa vol.3: The Juang